ପକାଇଲା । ଦୁହେଁଯାକ ଧସ୍ତାଧସ୍ତି ଟଣାଓଟରା କରୁ କରୁ ମାଟିରେ ପଡ଼ିଗଲେ । କୁମାର ସାହେବ ସୁଧାଂଶୁର ଛାତି ଉପରେ ବସି ଅଣ୍ଟାରୁ ଛୋରାଟା କାଢ଼ି ଯିମିତି ମାରିବାକୁ ହାତ ଉଠାଇଛନ୍ତି, ସିମିତି ପଛ ପଟରୁ ଜଣେ କନେଷ୍ଟବଲ ଆସି ଛୋରାଟା କାଢ଼ି ନେଲା । ସୁଧାଂଶୁ ଦାଢ଼ିକୁ ଧରି ଟାଣି-ଦେବାମାତ୍ରକେ କୁମାର ଧୂର୍ତ୍ତ ଶିବପ୍ରସାଦର ସ୍ୱରୂପ ଆପେ ଆପେ ପ୍ରକାଶ ହୋଇ ପଡ଼ିଲା । ଟଣା ଓଟରାରେ ସୁଧାଂଶୁର ମଧ୍ୟ ଛଦ୍ମବେଶ ଛପା ନ ଥିଲା । ସେତେବେଳେ ଆଲୁଅ ନେଇ ଅଉ ଦୁଇ ଗୁଡ଼ିଜଣ ପୋଲିସ୍ ପାଖକୁ ଆସିବାରୁ ଚମକି ଉଠି ସେ ଡାକିଲା, "ହିମାଂଶୁ—ଭାଇ, ଭାଇ ମୋର !"

"ଦାଦା, ତମେ ଯେ ?"—କହି ହିମାଂଶୁ ଠୋ ଠୋ ହସି ଉଠିଲା । ସିମିତି ଭାରି ଶୋଚାଏ ପୌରୁଷର କାମ କରିଛି ସେ । ସୁଧାଂଶୁ—ପାଷାଣ ପରି କଠୋର—ଦୁହେଁଯାକ ସହଜ ସରଳ ଜୀବନର ବହୁ ଦୂରରେ । କଣ ହେଲା, କମିତି ହେଲା, କାହିଁକି ହେଲା, କେହି କିଛି ଚିନ୍ତାବିମର୍ଶ ଧାରଣା କରିପାରୁ ନାହାନ୍ତି ଆଉପାଏ ।

--ଇତି—

× × × ×

ପ୍ରତିମା ଚମକି ଉଠି କହିଲା—"ଇତି ? ପ୍ରମୀଳାର କଣ ହେଲା ?"

କହିଲି—"ଶଶାଙ୍କଠାରୁ ଶୁଣିଛି—ସବୁ ସମୟରେ ସବୁ ଦେଶରେ ଯାହା ଘଟିଥାଏ, ତାହା । ଯୋଗ୍ୟତମର ମଥାରେ ହିଁ ରହେ ବିଜୟମୁକୁଟ ଚିରକାଳ । ସୁଦାମ ବାବୁ ହିଁ ରଣ ଜୟ କରି ପାଇଲେ ତାଙ୍କ ବିଜୟଲକ୍ଷ୍ମୀ ପ୍ରମୀଳାକୁ ।

—ଶେଷ—

---

Printed by B. K. Kar B. A. at the
Saraswata Press, Cuttack—1936

